# ବଡ ଘରର ଝିଅ

ପ୍ରେମଚାନ୍ଦ ମୁନ୍‌ସି



ଖୁସିରେ ପଢ଼ିବା ଅଭିଯାନ

**ଭାରତ ଜ୍ଞାନ ବିଜ୍ଞାନ ସମିତି**

Digitized by srujanika@gmail.com

# ବଡ ଘରର ଝିଅ

ମୂଳ ହିନ୍ଦୀ ଲେଖା : **ପ୍ରେମଚାନ୍ଦ ମୁନ୍‌ସି**
ଓଡିଆ ଅନୁରଚନା : ବିନୟକୃଷ୍ଣ ପଟ୍ଟନାୟକ
ଅଙ୍କନ : ଗୌରୀ ଶଙ୍କର ବେହେରା
ପ୍ରକାଶକ : **ଭାରତ ଜ୍ଞାନ ବିଜ୍ଞାନ ସମିତି,**
ସି-୨, ହାଉସିଂ ବୋର୍ଡ଼୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୪୭୦୮୯୧

ଅଙ୍ଗସଜ୍ଜା : ଓରିକନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।
ମୁଦ୍ରଣ

ସହଯୋଗ ରାଶି : ଅଢ଼େଇ ଟଙ୍କା ମାତ୍ର
ପ୍ରକାଶ କାଳ : ଜାନୁଆରୀ ପହିଲା, ୧୯୯୭

ଏହି ପୁସ୍ତିକାଟି '**ଖୁସିରେ ପଢିବା ଅଭିଯାନ**' (Jan Vanchan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରଚିକୁ ତେଜିବା ସାଙ୍ଗକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।

- **A Rich Bride** • Original Hindi -Premchand Munsi
- Oriya Transcreation - Binaya Krushna Pattanayak.
- Published by B.G.V.S., Orissa for Jan Vachan Andolan
- Price - Rs. 2.50 • Publication Period - 1st January 1997.

Digitized by srujanika@gmail.com

ବେଣୀ ମାଧବ ସିଂହ ଗୌରୀପୁର ଗାଁର ଜମିଦାର । ଏକ ସମୟରେ ତାଙ୍କ ଜେଜେ ବହୁତ ଧନୀ ଥିଲେ । ଏବେ ଗାଁର ପୋଖରୀ ଓ ମନ୍ଦିର ମରାମତି କରିବା ବି କାଠିକର କଥା । କିନ୍ତୁ ସେ ଏଗୁଡ଼ିକୁ ପକ୍କା କରି ବନାଇଥିଲେ । ଲୋକେ କହନ୍ତି ଗୋଟିଏ ସମୟରେ ତାଙ୍କ ଫାଟକ ପାଖରେ ହାତୀ ଦେଖିବାକୁ ମିଳୁଥିଲା ।

ସେହି ଜାଗାରେ ଏବେ ବୁଢ଼ୀ ମଇଁଷିଟିଏ ହିଁ ରହିଛି । ତା ଦେହରେ ହାଡ଼ କଙ୍କାଳ ଛଡ଼ା ଆଉ କିଛି ନାହିଁ । ସେ କୁଆଡ଼େ ବେଶ୍ ଦୁଧ ଦେଉଛି । ଜଣେ ନା ଜଣେ ଲୋକ ହାଣ୍ଡି ନେଇ ତା' ପାଖରେ ପହଞ୍ଚି ଯାଆନ୍ତି । ବେଣୀ ମାଧବ ସିଂହ ତାଙ୍କର ଅଧାରୁ ଅଧିକ ସମ୍ପତ୍ତି କୋର୍ଟ୍ କଚେରୀକୁ ଦାନ କରିଦେଇଥିଲେ । ସେ ଏବେ ମାସକୁ ହଜାରେ ଟଙ୍କାରୁ ବେଶୀ ଆୟ କରୁ ନଥିଲେ ।

ଠାକୁର ସାହେବଙ୍କର ଦୁଇ ପୁଅ ଥିଲେ । ବଡ଼ର ନାମ ଶ୍ରୀକଣ୍ଠ ସିଂହ । ବହୁତ ଦିନର ପରିଶ୍ରମ ଓ ଚେଷ୍ଟା ପରେ ସେ ବି.ଏ. ଡ଼ିଗ୍ରୀ ପାଇଥିଲା । ଏବେ ସେ ଗୋଟିଏ ଦପ୍ତରରେ ଚାକିରୀ କରୁଥିଲେ । ସାନ ପୁଅର ନାମ ଲାଲ ବିହାରୀ ସିଂହ । ସେ ଥିଲା ଆଖିକୁ ସୁନ୍ଦର ବଉଳ ଗାଈ । ସୁନ୍ଦର ମୁହଁ; ଚଉଡା ଛାତି । ସକାଳୁ ସେ ମଇଁଷିର ଦୁଇ ସେର ତାଜା ଦୁଧ ପିଇ ଦେଉଥିଲା । ଶ୍ରୀକଣ୍ଠ ସିଂହର ଢ଼ାଞ୍ଚା ପୂରାପୂରି ଓଲଟା ଥିଲା । ବି.ଏ.-ଏହି ଦୁଇ ଅକ୍ଷରିଆ ଶବ୍ଦଟି ତା'ର ଦେହକୁ ଦୁର୍ବଳ ଓ ଚେହେରାକୁ କାନ୍ତିହୀନ କରି ପକାଇଥିଲା । ଏଥିଯୋଗୁଁ ପଢ଼ାପଢ଼ି ପ୍ରତି ତା'ର ଅଧିକ ଆକର୍ଷଣ ଥିଲା ।

ଏହି ଇଂରାଜୀ ଡ଼ିଗ୍ରୀଟିର ଅଧିକାରୀ ହେଲେ ବି ଶ୍ରୀକଣ୍ଠ ବିଦେଶ ଚାଲି ଚଳଣିକୁ ବିଶେଷ ପସନ୍ଦ କରୁ ନ ଥିଲା । ବରଂ ସେ ରୋକ୍ ଠୋକ୍ ଭାବରେ ଏହାର ନିନ୍ଦା କରୁଥିଲା । ଏଥିଯୋଗୁଁ ଗାଁରେ ଲୋକେ ତାକୁ ଖୁବ ମାନୁଥିଲେ । ଦଶହରା ଦିନ ଅତି ଉତ୍ସାହରେ ସେ ରାମଲୀଳାରେ ଭାଗ ନେଉଥିଲା । କ'ଣ ଗୋଟିଏ



Digitized by srujanika@gmail.com

ଭୂମିକାରେ ବି ଅଭିନୟ କରୁଥିଲା । ଗୌରୀପୁରରେ ସେ ରାମଲୀଳାର ଜନ୍ମଦାତା ଥିଲା । ସେ ଜଣେ ହିଁ ଯୌଥ କୁଟୁମ୍ବକୁ ଅଧିକ ଗୁରୁତ୍ୱ ଦେଉଥିଲା ।

ଆଜିକାଲି ସ୍ତ୍ରୀ ଲୋକମାନଙ୍କୁ କୁଟୁମ୍ବରେ ମିଳିମିଶି ଚଳିବାରେ ଯେଉଁ ଅରଚି ହେଉଛି, ସେ ଭାବୁଥିଲା ଏହା ଉଭୟ ଦେଶ ଓ ଜାତି ପାଇଁ ହାନିକାରକ । ଏଥିଯୋଗୁଁ ଗାଁର ଝିଅ ବୋହୂ ତା'ର ନିନ୍ଦା କରୁଥିଲେ । ତା ସ୍ତ୍ରୀ ନିଜେ ହିଁ ଏହି ବିଷୟରେ ନିଜ ଶ୍ୱଶୁର, ଦିଅର, ବା ଆଦିଙ୍କୁ ପସନ୍ଦ କରୁ ନଥିଲା, ବରଂ ସେ ବିଚାରୁଥିଲା ଯେ, ଅନେକ କଥା ସହିବା ଓ ପରିବାର ସହ ଖାପ ଖୁଆଇ ଚଳିଲା ପରେ ବି ଯଦି ମେଳ ରହୁନାହିଁ, ତେବେ ଆଗାମୀ କାଲିକୁ ଦିନ ନଷ୍ଟ କରିଦେବା ଅପେକ୍ଷା ଅଲଗା ହାଣ୍ଡିରେ ଚାଉଳ ପକାଇବା ଉତ୍ତମ ହେବ ।





Digitized by srujanika@gmail.com

ଆନନ୍ଦୀ ଗୋଟିଏ ଉଚ୍ଚ କୁଳର ଝିଅ ଥିଲା । ତା'ର ବାପା ଗୋଟିଏ ଛୋଟ ଗାଁର ଜମିଦାର ଥିଲେ । ସାଧାରଣତଃ ଜଣେ ଜମିଦାରଙ୍କ ପାଖରେ ବିଶାଳ ଭବନ, ହାତୀଟିଏ, ପଲେ କୁକୁର, ଛଅଣ, ଘୋଡା, ଗାଡି, ଚାଳକ ଆଦି ରହିବା ଏକ ସାଧାରଣ କଥା । ତାଙ୍କ ପାଖରେ ବି ଏ ସବୁ ଥିଲା । ତାଙ୍କ ନାମ ଥିଲା ଭୂପ ସିଂହ । ସେ ଥିଲେ ଜଣେ ଉଦାରମନା ଓ ପ୍ରତିଭାବାନ ପୁରୁଷ । କିନ୍ତୁ ଦୁର୍ଭାଗ୍ୟକୁ ତାଙ୍କର ଗୋଟିଏ ବୋଲି ବି ପୁଅ ନ ଥିଲା । ତାଙ୍କର ସାତଟି ଝିଅ ଜନ୍ମ ହେଲେ । ଯୋଗକୁ ସମସ୍ତେ ଜୀବିତ ରହିଲେ ।

ପହିଲି ଦଫାରେ ସେ ତିନି ଝିଅଙ୍କ ବାହାଘର ଧୂମ୍ ଧାମ୍‌ରେ କଲେ । କିନ୍ତୁ ଏଥିରେ ପନ୍ଦର କୋଡିଏ ହଜାର ଟଙ୍କା ଋଣ ହୋଇଗଲା । ସେଇଠୁ ତାଙ୍କ ଆଖି ଖୋଲିଗଲା । ସେ ଏଥର ଜଗିରଖି ଖର୍ଚ୍ଚ କଲେ । ଆନନ୍ଦୀ ଥିଲା ଚତୁର୍ଥ ଝିଅ । ଅନ୍ୟ ସବୁ ଭଉଣୀଙ୍କ ଠାରୁ ସେ ଥିଲା ଅଧିକ ରୂପବତୀ ଓ ଗୁଣବତୀ । ଏଥିପାଇଁ ଭୂପ ସିଂହ ତାକୁ ବହୁତ ସ୍ନେହ କରୁଥିଲେ ।

ସାଧାରଣତଃ, ସୁନ୍ଦର ଛୁଆଟିକୁ ତା'ର ମାଆ ବାପା ବି ସବୁବେଳେ ବେଶୀ ଆଦର କରନ୍ତି । ଠାକୁର ସାହେବ ବଡ଼ ଧର୍ମ ସଙ୍କଟରେ ଥିଲେ ଯେ, ଝିଅକୁ କେଉଁଠି ବାହା କରାଇବେ ? ସେ ଏହା ଚାହୁଁ ନ ଥିଲେ ଯେ, ଋଣର ବୋଝ ଆଉ ବଢୁ । ଏହା ବି ସେ ଗ୍ରହଣ କରି ପାରୁ ନ ଥିଲେ ଯେ, ଝିଅ ନ ଭାବୁ ସେ ବଡ଼ ହତଭାଗିନୀ । ଦିନେ ଶ୍ରୀକଣ୍ଠ ତାଙ୍କ ପାଖକୁ କୌଣସି ଚାନ୍ଦା ଟଙ୍କା ମାଗିବାକୁ ଆସିଥିଲା । ବୋଧେ ଡେ଼ଙ୍ଗୁରା ଚାନ୍ଦା । ତା' ସ୍ୱଭାବ ଭୂପ ସିଂହଙ୍କ ମନକୁ ଛୁଇଁଲା । ସେ ଆନନ୍ଦୀ ସହ ଶ୍ରୀକଣ୍ଠ ସିଂହର ବାହାଘର ଧୂମ୍‌ଧାମ୍ ରେ କରିଦେଲେ ।

ଆନନ୍ଦୀ ନୂଆ ଘରଟିକୁ ଆସିଲା । କିନ୍ତୁ ଏଠାକାର ଢଙ୍ଗ ଢାଙ୍ଗ ତାକୁ ବେଶ୍ ଅଲଗା ଲାଗିଲା । ସେ ଘରେ ପିଲାବେଳୁ ଯେପରି ଧୂମ୍ ଧାମ୍‌ରେ ବଢ଼ିଥିଲା, ଏଠାରେ ସେ ସବୁ ନାଁକୁ ମାତ୍ର ବି ନ ଥିଲା । ସେ ରେଶମୀ ଚପଲ ନେଇ ଆସିଥିଲା । ଏଠାରେ କିନ୍ତୁ ଏହା ବାଗ ହେଲା ନାହିଁ । ଘରଟିରେ ଝରକା ବି ନ ଥିଲା । ଏହା



Digitized by srujanika@gmail.com



ଥିଲା ଜଣେ ସିଦାସାଦା ଗୃହସ୍ଥର ଘର । ତଥାପି ଆନନ୍ଦୀ ଅଳ୍ପ ଦିନ ଭିତରେ ଏହି ନୂଆ ବ୍ୟବସ୍ଥା ସହ ନିଜକୁ ଖାପ ଖୁଆଇ ନେଲା, ସତେ ଯେମିତି ସେ ବିଳାସ କ'ଣ ଆଗରୁ କେବେ ଦେଖି ନ ଥିଲା ।

ଦିନେ ଦି' ପହର ବେଳେ ଲାଲ୍ ବିହାରୀ ସିଂହ ଦୁଇଟି ଚଢ଼େଇ ଧରି ପହଞ୍ଚିଲା । ଭାଉଜକୁ କହିଲା, '' ଜଲ୍‌ଦି ରାନ୍ଧ, ମତେ ଭୋକ ଲାଗୁଛି । ''ଆନନ୍ଦୀ ରାନ୍ଧି ସାରି ଅପେକ୍ଷା କରିଥିଲା । ଏବେ ପୁଣି ନୂଆ ତରକାରୀଟିଏ ବନେଇବାକୁ ବସିଲା । ହାଣ୍ଡିରେ ତ ଚାମଚକରୁ ବି ବେଶୀ ଘିଅ ନ ଥିଲା । ବଡ଼ ଘରର ଝିଅ, ସେ



Digitized by srujanika@gmail.com

କି ଜାଣେ ନିଅଣ୍ଟ କ'ଣ । ସେ ମାଂସରେ ସବୁ ଘିଅ ଢ଼ାଳି ଦେଲା । ଲାଲ୍ ବିହାରୀ ଖାଇବାକୁ ବସିଲା । ଡାଲିରେ ଘିଅ ପଡି ନ ଥିଲା । ସେ କହିଲା, " ଡାଲିରେ କାହିଁକି ଘିଅ ପକାଇ ନ ? "

ଆନନ୍ଦୀ କହିଲା, " ସବୁ ଘିଅ ମାଂସରେ ଦେଇଦେଲି । " ଲାଲ୍ ବିହାରୀ ପାଟି କରି କହିଲା, " କାଲି ନା ପଅର ଦିନ ଘିଅ ଅଣାହୋଇଥିଲା । ଏତେ ଜଲ୍‌ଦି ସବୁ ସରିଗଲା ? " ଆନନ୍ଦୀ ଉତ୍ତର ଦେଲା, " ଆଜି ତ ମାତ୍ର ଚାମଚେ ହେବ ଥିଲା । ତାକୁ ପୂରା ମୁଁ ମାଂସରେ ପକାଇ ଦେଲି । " ଶୁଖିଲା କାଠି ଜଳି ଉଠିଲା ପରି ଭୋକିଲା ମଣିଷ ଟିକିଏ ଟିକିଏ କଥାରେ ବି ଚିଡ଼ିକି ଉଠେ । ଭାଉଜର ଏହି କଥାଟି ଲାଲ୍ ବିହାରୀକୁ ବହୁତ ଖରାପ ଲାଗିଲା । ସେ ପାଟି କରି କହିଲା, " ବାପ ଘରେ ତ ଖାଲି ଘିଅର ନଈ ବୋହିଯାଉଥିବ । "

ସ୍ତ୍ରୀ ଲୋକମାନେ ଗାଳି ସହିଯାଆନ୍ତି । ମାଡ଼ ବି ସହିଯାଆନ୍ତି । କିନ୍ତୁ ବାପ ଘରର ନିନ୍ଦା ଜମା ସହି ପାରନ୍ତି ନାହିଁ । ଆନନ୍ଦୀ ପାଟି ଲେଉଟାଇ କହିଲା, " ହାତୀ ମଲେ ବି ନଅ ଲକ୍ଷ ଟଙ୍କାର । ସେଇଠି ତ ପ୍ରତିଦିନ ଭାତରେ ହିଁ ଏତିକି ଘିଅ ଖାଆନ୍ତି ।" ଲାଲ୍ ବିହାରୀ ରାଗରେ ଜଳିଗଲା । ଥାଳୀ ଉଠାଇ କଚି ଦେଲା ଓ କହିଲା - " ଇଚ୍ଛା ହେଉଛି, ତୋ' ଜିଭଟାକୁ ଧରି ଭିଡି ଆଣିବି । "

ଆନନ୍ଦୀ ବି ରାଗିଗଲା । ତା' ମୁହଁ ଲାଲ୍ ପଡିଗଲା । ସେ କହିଲା, " ସିଏ ଥାଆନ୍ତେ ତ ମଜା ଚଖାଇ ଥାନ୍ତି । " ଏ କଥା ଶୁଣି ଅପାଠୁଆ ଠାକୁର କି ଆଉ ରହିପାରେ ? ସେ ଖଡ଼ିକାଟା ଉଠାଇ ନେଇ ଆନନ୍ଦୀ ଆଡ଼କୁ ଜୋର୍‌ରେ ଫିଙ୍ଗି ଦେଲା ଓ କହିଲା, " ଯାହା ଲାଗି ଏମିତି ମୁହଁବଡ଼ା କଥା କହୁଛୁ, ତାକୁ ବି ଦେଖିଦେବି, ଆଉ ତତେ ବି । " ଆନନ୍ଦୀ ହାତରେ ଖଡ଼ିକାଟାକୁ ଛେକି ଦେଲା ।

ତା'ର ମୁଣ୍ଡଟି ବଞ୍ଚିଗଲା; କିନ୍ତୁ ଆଙ୍ଗୁଠି ଖଣ୍ଡିଆ ହୋଇଗଲା । ସେ ରାଗର ପବନରେ ପତ୍ର ପରି ଥରି ଉଠିଲା । ସେ ସିଧା ନିଜ ବଖରାକୁ ଚାଲି ଆସିଲା । ସ୍ତ୍ରୀର



Digitized by srujanika@gmail.com



ବଳ ଓ ସାହସ, ମାନ ଓ ମର୍ଯ୍ୟାଦା ପତି ଯାଏଁ ହିଁ ଥାଏ । ସେ ତା' ପତିର ବଳ ଓ ପୌରୁଷତ୍ୱକୁ ଦେଖାଇ କିଛି କିଛି କହିପାରେ । ଆନନ୍ଦୀ ରାଗରେ ଜଳୁଥାଏ ।

ଦୁଇ ଦିନ ଯାଏଁ ସେ ରାଗରେ ରହିଲା । କିଛି ଖିଆପିଆ କଲା ନାହିଁ । ପତିର ବାଟକୁ ଅନାଇ ରହିଲା । ସବୁ ଥର ପରି ଶନିବାର ଦିନ ଶ୍ରୀକଣ୍ଠ ଘରକୁ ଫେରିଲା । ବାରଣ୍ଡାରେ କିଛି ସମୟ ବସି ଏପଟ ସେପଟ କଥା ଗପିଲା । ଏହି ଗପସପ ରାତି ଦଶଟା ଯାଏଁ ଚାଲିଲା । ଏହି ଦୁଇ ତିନି ଘଣ୍ଟା ଆନନ୍ଦୀ ବଡ଼ କଷ୍ଟରେ କାଟିଲା । ଖାଇବା ବେଳ ହେଲା । ପଞ୍ଚାୟତ ଉଠିଲା । ନିଛାଟିଆ ହେଲା ପରେ ଲାଲ ବିହାରୀ କହିଲା, " ଭାଇ, ଆପଣ ଟିକେ ଭାଉଜଙ୍କୁ ବୁଝାଇବେ । ସେ ମୁହଁ ସମ୍ଭାଳିକି



Digitized by srujanika@gmail.com

କଥାବାର୍ତ୍ତା କରନ୍ତୁ । ତା ନ ହେଲେ କେଉଁ ଦିନ ଅନର୍ଥ ହୋଇଯିବ । '' ବେଣୀ ମାଧବ ପୁଅ ପାଇଁ ସାକ୍ଷୀ ଦେଇ କହିଲେ, '' ହଁ, ଝିଅ ବୋହୁ ଯାହା ହେଲେ ବି ମରଦଙ୍କୁ ଜବାବ ଦେବା ଉଚିତ ନୁହେଁ । ''

ଶ୍ରୀକଣ୍ଠ ଚିନ୍ତିତ ସ୍ୱରରେ କହିଲା, '' ଆରେ, କଥାଟା କ'ଣ ? ''

ଲାଲ୍ ବିହାରୀ କହିଲା, '' କିଛି ବି ନୁହେଁ । ସେ ତ ଉପରେ ପଡ଼ି ଝଗଡ଼ା କରୁଛନ୍ତି । ସିଏ ଏମିତି କାହିଁକି ହେଉଛନ୍ତି, ଆମେ ଜମା ବୁଝି ପାରୁ ନାହୁଁ । ''

ଶ୍ରୀକଣ୍ଠ କହିଲା, '' ଆରେ, ମୁଁ କିଛି ବି ବୁଝି ପାରୁ ନାହିଁ । ସଫା ସଫା କୁହ କ'ଣ ହୋଇଛି ? '' ଆନନ୍ଦୀ କହିଲା, '' ପଅର ଦିନ ତୁମ ଗେହ୍ଲେଇ ଭାଇ ମତେ ମାଂସ ରାନ୍ଧିବାକୁ କହିଲେ । ଘିଅ ହାଣ୍ଡିରେ ତାମଚକରୁ ବେଶୀ ଘିଅ ନ ଥିଲା । ମୁଁ ସବୁତକ ଘିଅ ମାଂସରେ ପକାଇ ଦେଲି । ଖାଇବସି ସେ ମୋତେ କହିଲେ, ଡ଼ାଲିରେ କାହିଁକ ଘିଅ ପଡିନି ? ବାସ୍ ଏତିକିରୁ ହିଁ ମତେ ଏଣୁ ତେଣୁ ବକିବାରେ ଲାଗିଲେ । ମୁଁ ନ କହି ରହି ପାରିଲିନି ଯେ, ଏଠାରେ ଏତେ କମ୍ ଘିଅ ଖାଉଛ ଯେ, କିଏ କେମିତି ଜାଣିବ କହିଲ ? ବାସ୍ ଏତିକି କଥା । କିନ୍ତୁ ଏହି ଅଭଦ୍ର ମୋ ଉପରକୁ ଖଡ଼ିକା ଝାଡୁ ଫିଙ୍ଗିଲେ । ହାତରେ ରୋକି ନ ଥିଲେ ମୋ ମୁଣ୍ଡ ଫାଟିଯାଇ ଥାଆନ୍ତା । ତାଙ୍କୁ ହିଁ ପଚାର ମୁଁ କ'ଣ କହିଛି । ''

ଏହା ସତ ହେଉ ବା ମିଛ; କିନ୍ତୁ ଶ୍ରୀକଣ୍ଠର ଆଖି ଲାଲ୍ ହୋଇଗଲା । ସେ ରାଗରେ କହିଲା, '' ଏ ଟୋକାର ଏତେ ସାହସ ! '' ସ୍ତ୍ରୀଙ୍କ ସ୍ୱଭାବ ଅନୁସାରେ ଆନନ୍ଦୀ କାନ୍ଦିବାରେ ଲାଗିଲା । ତାଙ୍କର ଆଖି ପଲକରେ ହିଁ ଲୁହ ଝରିପଡେ । ଶ୍ରୀକଣ୍ଠ ରାତିସାରା ଖାଲି କତ ଲେଉଟାଉଥାଏ ।

ସକାଳେ ସେ ବାପାଙ୍କ ପାଖରେ ପହଞ୍ଚିଲା । କହିଲା '' ଦାଦା, ମୁଁ ଆଉ ଏ ଘରେ ରହିପାରିବି ନାହିଁ । '' ବେଣୀ ମାଧବ ସିଂହ ଘାବରେଇ ଗଲେ । ବ୍ୟସ୍ତରେ କହିଲେ - '' କାହିଁକି ? '' ଶ୍ରୀକଣ୍ଠ କହିଲା, '' ମୋର ବି କିଛି ମାନ ସମ୍ମାନ ତ ଅଛି ।



Digitized by srujanika@gmail.com

ଆପଣଙ୍କ ଘରେ ଏବେ ଅନ୍ୟାୟ ଓ ଅତ୍ୟାଚାର ବଢ଼ିଲାଣି । ମୋ ପଛରେ ଏଠାରେ ସ୍ତ୍ରୀଙ୍କ ଉପରେ ଖଡିକା ଓ ଜୋତା ଫିଙ୍ଗା ହେଉଛି । ମତେ କିଏ ପଦେ ଦି' ପଦ କହିଦେଲେ, ମୁଁ ସହିଯାଇପାରେ । କିନ୍ତୁ ମତେ କିଏ ନାତ, ଗୋଇଠା ମାରିବ, ଆଉ ତା' ମୁଁ ମୁଣ୍ଡପାତି ସହିଯିବି ! ଏହା ସମ୍ଭବ ନୁହେଁ । ''

ବେଣୀ ମାଧବ ସିଂହ କିଛି ଜବାବ ଦେଇ ପାରିଲେ ନାହିଁ । ଶ୍ରୀକଣ୍ଠ ସବୁବେଳେ ତାଙ୍କୁ ଆଦର କରୁଥିଲା । ତା'ର ଏହି ହାବଭାବ ଦେଖି ବୁଢ଼ା ଜମିଦାର ଅବାକ୍ ହୋଇଗଲେ । କେବଳ ଏତିକି କହିଲେ '' ବାପାରେ, ତୁ ବୁଦ୍ଧିମାନ ହୋଇ ବି ଏପରି କଥା କହୁଛୁ ? ସ୍ତ୍ରୀମାନେ ଏମିତି ହିଁ ଘରକୁ ନାଶ କରି ଦିଅନ୍ତି । ତାଙ୍କୁ ମୁଣ୍ଡରେ ବସେଇବା ଠିକ୍ ନୁହେଁ । ''






Digitized by srujanika@gmail.com

ଦୁହେଁ କିଛି ସମୟ ଚୁପ୍ ରହିଲେ । ଜମିଦାର ସାହେବ ପୁଅର ରାଗ ଶାନ୍ତ କରିବାକୁ ଚାହୁଁଥିଲେ । କିନ୍ତୁ ସେ ଏହା ମାନିବାକୁ ରାଜି ନ ଥିଲେ ଯେ, ଲାଲ୍ ବିହାରୀ କିଛି ଅନୁଚିତ କାମ କରିଛି । ଏହା ଭିତରେ ଗାଁର ଆଉ କିଛି ଲୋକ ସେଠାରେ ପହଞ୍ଚିଗଲେ । ହୁକା-ଚିଲମ ଟାଣିବା ନା'ରେ ସେମାନେ ଆସିଥାନ୍ତି । କେତେ ଜଣ ସ୍ତ୍ରୀ ଲୋକ ବି ଏ କଥା ଶୁଣିଲେ । ଶ୍ରୀକଣ୍ଠ ପତ୍ନୀ କଥାରେ ବାପାଙ୍କ ସାଙ୍ଗରେ ଝଗଡା କରୁଥିବାରୁ ସେମାନେ ଖୁସି ହେଉଥିଲେ ।

ଗାଁରେ କିଛି କୁଟିଳ ଲୋକ ବି ଥିଲେ । ଏହି କୁଳର ଆଦର୍ଶ ରୀତି ନୀତି ଦେଖି ସେମାନେ ମନେ ମନେ ଜଳୁଥିଲେ । ସେମାନେ କହୁଥିଲେ - ଶ୍ରୀକଣ୍ଠ ତା ବାପା କଥାରେ ଉଠ୍ ବସ୍ ହେଉଛି । ତେଣୁ ସେ ଏମିତିକା ଲାଜକୁଳା । ସେ ପାଠ ପଢ଼ିଲା । ତେଣୁ ସେ ବହି କୀଟଟିଏ ବନି ଯାଇଛି । ତାକୁ ନ ପଚାରି ବେଣୀ ମାଧବ ସିଂହ କିଛି ବି କାମ କରୁ ନାହାନ୍ତି । ଏହା ତାଙ୍କର ମୂର୍ଖାମୀ । କିଏ ହୁକ୍କା ଟାଣିବା ବାହାନାରେ ତ କିଏ ରଣ ରସିଦ ଦେଖାଇବା ବାହାନାରେ ଆସି ସେଠାରେ ବସିଲେ ।

ବେଣୀ ମାଧବ ସିଂହ ପୁରୁଣାକାଳିଆ ଲୋକ ଥିଲେ । ସେ ସେମାନଙ୍କ ହାବଭାବକୁ ଠିକ୍ ଠଉରାଇ ନେଲେ । ଠିକ୍ କଲେ ଯେ, ଯାହା କିଛି ହେଲେ ବି, ସେ ଏହି ଈର୍ଷ୍ୟାପର ଲୋକଙ୍କୁ ତାଳି ମାରିବାକୁ ସୁଯୋଗ ଦେବେ ନାହିଁ । ତୁରନ୍ତ କୋମଳ ଭାବରେ ସେ କହିଲେ, " ବାପାରେ, ତୁ ମତେ ଠିକ୍ ବୁଝିଛୁ । ସାନ ତ ଭୁଲ କରିଛି, ତୁ ଯାହା ଚାହୁଁ ତା' କରେ । "

ବାପା ଯେଉଁ ଉଦ୍ଦେଶ୍ୟରେ ଏପରି କହିଲେ ଶ୍ରୀକଣ୍ଠ ତାହା ବୁଝି ପାରିଲା ନାହିଁ । ସେ ଓଲଟା କହିଲା - " ଲାଲ୍ ବିହାରୀ ସାଥିରେ ମୁଁ ଏ ଘରେ ରହିପାରିବି ନାହିଁ । " ବେଣୀମାଧବ କହିଲେ- " ବାପାରେ, ବୁଦ୍ଧିମାନ ଲୋକମାନେ ମୂର୍ଖଙ୍କ କଥାକୁ ଧ୍ୟାନ ଦିଅନ୍ତି ନାହିଁ । ସେ ତ ଅବୁଝା ପିଲାଟାଏ । ସେ ଯାହା ଭୁଲ କରିଛି, ତୁ ବଡ଼ ଭାବରେ ତାକୁ କ୍ଷମା କରି ଦେ । "



Digitized by srujanika@gmail.com

ଶ୍ରୀକଣ୍ଠ କହିଲା -" ତା'ର ଏହି ଦୁଷ୍ଟାମୀକୁ ମୁଁ ସହି ପାରିବିନି । ସେ ଏହି ଘରେ ରହିବ, ନ ହେଲେ ମୁଁ । ସେ ଯଦି ଆପଣଙ୍କର ଅଧିକ ପ୍ରିୟ, ତେବେ ମତେ ବିଦାୟ ଦିଅନ୍ତୁ । ମୁଁ ନିଜ କଥା ନିଜେ ବୁଝିବି । ମତେ ଯଦି ରଖିବାକୁ ଚାହାନ୍ତି, ତେବେ ତାକୁ କହନ୍ତୁ ତା'ର ଯୁଆଡ଼େ ଇଛା, ଚାଲିଯାଉ । ଏହା ମୋର ଶେଷ ନିଷ୍ପତ୍ତି । "

ଲାଲ୍ ବିହାରୀ ସିଂହ ଦୁଆର ଚଉକାଠ ଉପରେ ଚୁପ୍ ଚାପ୍ ଠିଆ ହୋଇ ବଡ଼ ଭାଇର କଥା ଶୁଣୁଥାଏ । ସେ ଶ୍ରୀକଣ୍ଠକୁ ବହୁତ ଆଦର କରୁଥିଲା । ତା'ର କେବେ ଏତେ ସାହସ ନ ଥିଲା ଯେ, ଶ୍ରୀକଣ୍ଠ ଆଗରେ ସେ ଚଟାଣରେ ବସିଯିବ । ହୁକ୍କା ଟାଣିବ ବା ପାନ ଖାଇବ ।






Digitized by srujanika@gmail.com

ସେ ବାପାଙ୍କୁ ବି ଏତିକି ଖାତିର କରୁ ନ ଥିଲା । ଶ୍ରୀକଣ୍ଠ ବି ତା'କୁ ଅନ୍ତରର ସହ ସ୍ନେହ କରୁଥିଲା । ନିଜ ଜାଣିବାରେ ସେ ଟାକୁ କେବେ ଆଣ୍ଟ କରି ଦି'ପଦ ବି କହି ନ ଥିଲା ।

ଗଲା ବର୍ଷ ନାଗ ପଞ୍ଚମୀ ଉତ୍ସବରେ ନିଜ ଜୀବନକୁ ବାଜି ଲଗାଇ ସେ ଜଣକୁ ଏକ ବଡ଼ ବିପଦରୁ ବଞ୍ଚାଇ ଦେଲା । ସେ ପୁଲକିତ ହୋଇ ସମସ୍ତଙ୍କ ଆଗରେ ଟାକୁ କୁଣ୍ଢାଇ ପକାଇ ଥିଲା । ଏପରି ଭାଇର ମୁହଁରୁ ଏପରି ଛାତିଫଟା କଥା ଶୁଣି ଲାଲ୍ ବିହାରୀକୁ ଭାରି କାଟିଲା । ସେ ଧକେଇ ଧକେଇ କାନ୍ଦିବାରେ ଲାଗିଲା । ଏଥିରେ ସନ୍ଦେହ ନାହିଁ ଯେ, ସେ ନିଜ କାମ ପାଇଁ ବି ପସ୍ତାଉଥିଲା ।

ସେ ମୂର୍ଖ ଥିଲା । କିନ୍ତୁ ତା'ମନ କହୁଥିଲା ଯେ, ଭାଇ ମୋ ସାଥିରେ ଅନ୍ୟାୟ କରୁଛନ୍ତି । ଶ୍ରୀକଣ୍ଠ ଟାକୁ ଏକଲା ଡାକି ଦୁଇ ଚାରି ପଦ କଡା କଥା କହି ଦେଇ ଥିଲେ, ସେ ସହି ଯାଇଥାନ୍ତା । ଖାଲି ଏତିକି ନୁହେଁ, ଦୁଇ ଚାରି ଚାପଡା ଦେଇଥିଲେ ବି ତା'ମନ ଏତେ ଦୁଃଖ ହୋଇ ନ ଥାନ୍ତା । କିନ୍ତୁ ଭାଇ କହିଲା ଯେ, ସେ ତା'ର ମୁହଁ ବି ଦେଖିବାକୁ ଚାହେଁ ନାହିଁ ।

ଲାଲ୍ ବିହାରୀ ଏହା ସହି ପାରିଲା ନାହିଁ । ସେ କାନ୍ଦି କାନ୍ଦି ଘର ଭଟରକୁ ଆସିଲା । ନିଜ ବଖରାକୁ ଚାଲି ଯାଇ ଲୁହ ପୋଛି ପୋଛି ଲୁଗା ବଦଳାଇଲା, ଯେପରି କେହି ଜାଣି ପାରିବେ ନାହିଁ ଯେ, ସେ କାନ୍ଦୁଥିଲା । ଆନନ୍ଦୀ- ବଖରାର ଦୁଆର ପାଖକୁ ଆସି କହିଲା- '' ଭାଉଜ, ଭାଇ ଠିକ କରିଛନ୍ତି ଯେ, ସେ ମୋ ସାଥିରେ ଏ ଘରେ ରହିବେନି । ଏବେ ସେ ମୋ ମୁହଁ ଦେଖିବେନି କହୁଛନ୍ତି । ତେଣୁ ମୁଁ ଯାଉଛି । ଟାଙ୍କୁ ଆଉ କେବେ ମୁହଁ ଦେଖାଇବିନି । ମୁଁ ଯାହା କିଛି ବି ଭୁଲ କରିଛି, ସେଥିପାଇଁ କ୍ଷମା କରିବ । ''

ଏହା କହୁ କହୁ ଲାଲ୍ ବିହାରୀର କଣ୍ଠ ଚାପି ହୋଇଗଲା । ଲାଲ୍ ବିହାରୀ ଦୁଆର ମୁହଁରେ ମୁହଁ ତଳକୁ କରି ଠିଆ ହୋଇଥିଲା ବେଳେ ଶ୍ରୀକଣ୍ଠ ବି ଆଖି ଲାଲ୍



Digitized by srujanika@gmail.com

କରି ଭିତରକୁ ଆସିଲା । ଭାଇକୁ ଠିଆ ହୋଇଥିବା ଦେଖି ଘୃଣାରେ ସେ ମୁହଁ ବୁଲାଇ ଦେଲା । ସାଙ୍ଗେ ସାଙ୍ଗେ ତା'ବଖରା ଭିତରକୁ ପଳାଇଲା । ଆନନ୍ଦୀ ଲାଲ୍ ବିହାରୀ ନାଁରେ ଅଭିଯୋଗ କରିଥିଲା ସତ; କିନ୍ତୁ ଏଥର ତାକୁ ବି ଭାରି ବାଧିଲା । ସେ ମନେ ମନେ ପସ୍ତାଉ ଥାଏ ।

ସେ ଖୁବ୍ ଦୟାବତୀ ଥିଲା । ସେ ଭାବି ନ ଥିଲା ଯେ, ଏହି ଛୋଟ କଥାଟି ଏତେ ଦୂର ବଢ଼ିଯିବ । ସେ ମନେ ମନେ ଭାବୁଥିଲା, ତା ପତି କାହିଁକି ଏତେ ଜୋର ରାଗିଯାଉଛନ୍ତି ? ତାକୁ ଡ଼ର ବି ଲାଗୁଥାଏ ଯେ, କାଲେ ତାକୁ ସେ ଏଲାହାବାଦ ଯିବାକୁ କହିବେ ତ ସେ କ'ଣ କରିବ ?






Digitized by srujanika@gmail.com

ଏହା ଭିତରେ ଦୁଆର ମୁହଁରେ ଠିଆ ଲାଲ୍ ବିହାରୀ ଶୁଣାଇ ଦେଲା, '' ମୁଁ ଏବେ ଯାଉଛି । ଯାହା କିଛି ବି ଭୁଲ କରିଛି, ମତେ କ୍ଷମା କରି ଦେବ । '' ତା'ର ସବୁ ରାଗରୁଷା ପାଣି ଫାଟିଗଲା । ସେ କାନ୍ଦିବାରେ ଲାଗିଲା । ମନର ମଇଳାକୁ ଧୋଇବା ପାଇଁ ଆଖିର ପାଣିଠୁ ଅଧିକା ଉପଯୁକ୍ତ ଜିନିଷ ଆଉ କିଛି ନାହିଁ ।

ଶ୍ରୀକଣ୍ଠକୁ ଦେଖି ଆନନ୍ଦୀ କହିଲା, '' ଲାଲା ବାହାରେ ଠିଆ ହୋଇ ବହୁତ କାନ୍ଦିଲେଣି । '' ଶ୍ରୀକଣ୍ଠ କହିଲା '' ତା' ହେଲେ ମୁଁ କ'ଣ କରିବି ? '' ଆନନ୍ଦୀ କହିଲା - '' ତାଙ୍କୁ ଭିତରକୁ ଡାକ । ମୋ ଜିଭ ପୋଡିଯାଉ । ମୁଁ କାହିଁକି ଏହି ଝଗଡା ଆରମ୍ଭ କଲି ? ଶ୍ରୀକଣ୍ଠ କହିଲା - '' ମୁଁ ଡାକି ପାରିବିନି । ''

ଆନନ୍ଦୀ କହିଲା, '' ହେଇଟି ପସ୍ତାଇବ । ସେ ବହୁତ ମନ କଷ୍ଟ କଲେଣି । ଯଦି କୁଆଡେ ପଳେଇବେ ... । '' ଶ୍ରୀକଣ୍ଠ ଉଠିଲା ନାହିଁ । ଏଥର ଲାଲ୍ ବିହାରୀ ପୁଣି କହିଲା, '' ଭାଉଜ, ଭାଇଙ୍କୁ ମୋର ପ୍ରଣାମ ଜଣାଇ ଦିଅ । ସେ ମୋର ମୁହଁ ଦେଖିବାକୁ ଚାହାନ୍ତି ନାହିଁ । ଏଥିପାଇଁ ମୁଁ ବି ତାଙ୍କୁ ମୋ ମୁହଁ କେବେ ଦେଖାଇବିନି । ''

ଏତିକି କହି ଲାଲ୍ ବିହାରୀ ଫେରିଗଲା । ଦାଣ୍ଡ ଦୁଆର ଆଡକୁ ବେଗି ବେଗି ଚାଲିଲା । ଶେଷରେ ଆନନ୍ଦୀ ତା'ବଖରାରୁ ବାହାରି ଆସିଲା । ସେ ଲାଲ୍ ବିହାରୀର ହାତକୁ ଧରି ପକାଇଲା । ଲାଲ୍ ବିହାରୀ ପଛକୁ ଫେରି ଦେଖିଲା । ଆଖିରେ ଲୁହ ଛଳ ଛଳ କରି କହିଲା- '' ମତେ ଯିବାକୁ ଦିଅ । ''

ଆନନ୍ଦୀ କହିଲା - '' କୁଆଡେ ଯିବ ? '' ଲାଲ୍ ବିହାରୀ କହିଲା- '' ଯେଉଁଠି କେହି ମୋର ମୁହଁ ଦେଖିବେ ନାହିଁ । '' ଆନନ୍ଦୀ କହିଲା, '' ମୁଁ ତୁମକୁ ଛାଡିବିନି । '' ଲାଲ୍ ବିହାରୀ କହିଲା , '' ତୁମମାନଙ୍କ ସହ ମିଶି ରହିବାକୁ ମୁଁ ଯୋଗ୍ୟ ନୁହେଁ । '' ଆନନ୍ଦୀ କହିଲା- '' ତୁମକୁ ମୋ ରାଣ, ଆଗକୁ ଆଉ ପାଦେ ବି ବଢ଼ିବ ନାହିଁ । '' ଲାଲ୍ ବିହାରୀ କହିଲା- '' ଯେବେ ଯାଏଁ ଭାଇ ମୋତେ ଚାହିଁବେ ନାହିଁ, ସେବେ ଯାଏଁ ମୁଁ ଏ ଘରେ କଦାପି ରହିବି ନାହିଁ । ''



Digitized by srujanika@gmail.com

ଆନନ୍ଦୀ କହିଲା- " ମୁଁ ଈଶ୍ୱରଙ୍କୁ ସାକ୍ଷୀ ରଖି କହୁଛି, ତୁମ ପାଇଁ ମୋ ମନରେ ଟିକିଏ ବି ରାଗ ନାହିଁ । " ଏଥର ଶ୍ରୀକଣ୍ଠର ମନ ବି ବଦଳି ଗଲା । ସେ ବାହାରକୁ ଆସି ଲାଲ୍ ବିହାରୀକୁ କୁଣ୍ଢାଇ ପକାଇଲା । ଦୁଇ ଭାଇ ଧକେଇ ଧକେଇ ଖୁବ୍ କାନ୍ଦିଲେ ।

ଲାଲ୍ ବିହାରୀ କାନ୍ଦି କାନ୍ଦି କହିଲା, " ଭାଇ, ଏଥର ଆଉ କେବେ ବି କହିବେନି ଯେ, ତୋ ମୁହଁ ଦେଖିବିନି । ଏହାଛଡା ଆପଣ ଯାହା ଦଣ୍ଡ ଦେଲେ ବି ମୁଁ ଖୁସିରେ ମାନି ଯିବି । " ଶ୍ରୀକଣ୍ଠ ଥରିଲା ସ୍ୱରରେ କହିଲା - " ଲାଲୁରେ ଏ କଥାକୁ ପୂରା ଭୁଲିଯାଆ । ଭଗବାନ ଚାହିଁଲେ କେବେ ବି ଆଉ ଏମିତି ହେବ ନାହିଁ । "



ବେଣୀ ମାଧବ ସିଂହ ବାହାରୁ ଆସୁଥିଲେ । ଦୁଇ ଭାଇଙ୍କ ଆଲିଙ୍ଗନ ଦେଖି ସେ ଆନନ୍ଦରେ ପୁଲକି ଉଠିଲେ । ସେ କହି ପକାଇଲେ - " ବଡ଼ ଘର ଝିଅ ଏମିତି ହିଁ ହୁଏ । ଭଙ୍ଗା ଘରକୁ ସେ ଯୋଡି ଦେଇ ପାରେ । "ଗାଁରେ ଯିଏ ଏହି କଥା ଶୁଣିଲା, ସେ ଏହି ଶବ୍ଦରେ ଆନନ୍ଦୀର ଉଦାରତାର ଗୁଣ ଗାଇଲା - ବଡ଼ ଘରର ଝିଅ ହିଁ ଏମିତି ହୁଏ ।

●●

Digitized by srujanika@gmail.com